# ପ୍ରୀତି-ପ୍ରିୟା-ପୃଥିବୀ



ନନ୍ଦକିଶୋର ସିଂହ

# ପ୍ରୀତି ପ୍ରିୟା ପୃଥିବୀ

(ମିନି କବିତା ସଂକଳନ)

ନନ୍ଦକିଶୋର ସିଂହ



ପ୍ରୀତି ପ୍ରିୟା ପୃଥିବୀ
(ମିନି କବିତା ସଂକଳନ)

ଲେଖକ:
**ନନ୍ଦକିଶୋର ସିଂହ**
କୋରେଇ, ଯାଜପୁର - ୭୫୫୦୨୨

ପ୍ରକାଶିକା:
**ସୁରବାଳା ସିଂହ**
କୋରେଇ, ଯାଜପୁର - ୭୫୫୦୨୨

ପ୍ରଚ୍ଛଦ :
ସୁଶୀଲ କୁମାର ସାହୁ

ମୁଦ୍ରଣ :
ତୀରତରଙ୍ଗ ପ୍ରିଣ୍ଟର୍ସ, ଭୁବନେଶ୍ୱର

ପ୍ରଥମ ସଂସ୍କରଣ :
ଆଷାଢ଼ ୨୦୦୬

ମୂଲ୍ୟ :
ଟ. ୪୦.୦୦

**Priti Priya Prithvi**
(Collection of poems)

*Author :*
**Nandakishore Singh**
Korei, Jajpur- 755022

*Publisher :*
**Surabala Singh**
Korei, Jajpur- 755022

*Cover Design:*
Susil Kumar Sahu

*Printed at:*
**Teerataranga Printers**
Bhubaneswar

*1st Edition:*
**June, 2006**

*Price:*
**Rs. 40.00**

## ବହି ବିଷୟରେ ପଦେ

ପ୍ରୀତି-ପ୍ରିୟା-ପୃଥିବୀ ଶୀର୍ଷକ ଏକ ପାଣ୍ଡୁଲିପିକୁ ପୁସ୍ତକ ରୂପ ଦେବା ପାଇଁ ବାଲେଶ୍ୱରର ଏକ ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା ମୋତେ ଦୃଢ଼ ପ୍ରତିଶ୍ରୁତି ଦେଇ ପାଣ୍ଡୁଲିପିଟିକୁ ନେଇଥିଲେ । ପ୍ରକାଶକ ପୁଣି ଅତି ଆପଣାର ଲୋକ ।

କିନ୍ତୁ କୌଣସି ଏକ ଅଜଣା କାରଣରୁ ତାହା ଏଯାବତ ପୁସ୍ତକ ରୂପ ଧରି ପାରିଲାନି । ଆପଣାର ଲୋକଙ୍କୁ କିଛି କହିବି ହୁଏନା ।

ଏଣୁ ଏହି ପାଣ୍ଡୁଲିପିଟିକୁ ପୁଣି ସେଇ ନାମରେ ନିଜ ପ୍ରଚେଷ୍ଟାରେ ଶ୍ରୀମତୀ ସୁରବାଳା ସିଂହ ପୁସ୍ତକ ରୂପ ଦେବା ପାଇଁ ଆଗଭର ହୋଇଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ପାଠକେ ଏହା ପଢ଼ି ସନ୍ତୋଷ ଲାଭ କଲେ ଆନନ୍ଦିତ ହେବି । ଅବଶ୍ୟ କବିତାଗୁଡ଼ିକ ପ୍ରାୟ ଆଗରୁ ପତ୍ରପତ୍ରିକାରେ ପ୍ରକାଶ ପାଇ ସାରିଛି । ସେ ସବୁକୁ ଏକତ୍ର ଗୋଟିଏ ଜାଗାରେ ରଖିବାର ଏହା ପ୍ରୟାସ ମାତ୍ର ।

ମୋର ଆଶା ଓ ବିଶ୍ୱାସ ମୋର ପ୍ରକାଶିତ କବିତା ଗ୍ରନ୍ଥ (ଗୀତି କବିତା ନୁହେଁ) 'ଆବୃତ-ଅନାବୃତ' ପରି ଏହାମଧ୍ୟ ପାଠକ ସମାଜରେ ଆଦୃତ ହେବ ।

ବିନୀତ
ଲେଖକ

## ପ୍ରୀତି-ପ୍ରିୟା-ପୃଥ୍ବୀର ଜନ୍ମ ଯେଉଁମାନଙ୍କୁ ନେଇ....



# ପ୍ରୀତି- ପ୍ରିୟା- ପୃଥିବୀ

ପ୍ରୀତି - ଧୂସର ପୁଣି ସବୁଜ,
ସାଗର ପୁଣି ଉଷର ।

ପ୍ରିୟା - ଯୌବନର ଗୀତି,
ଜୀବନର ସାଥି ।

ପୃଥିବୀ - ଚିର ସବୁଜ, ଚିର ସୁନ୍ଦର ।



"କଳ୍କା-କର୍ପୂର" - ନଭେମ୍ବର-୨୦୦୦

# ପ୍ରେମିକା

ମନ ଯା' ପଥର ନୁହେଁ
ଆଖିରୁ ଯା' ସପନ ସରେନା
ଓଠରୁ ବି ଲିଭେନା ଫଗୁଣ
ଛାତିରେ ଯା' ଚିର ଦିନ
ସବୁଜ କମ୍ପନ ।

କଥା ଯାର ସବୁଦିନେ
କବିତା କବିତା
ସିଏ ମୋର ଚିରନ୍ତନୀ
ଅମର ପ୍ରେମିକା
ଯା' ପାଇଁ ଧୂଳିରେ ସ୍ୱର୍ଗ
ଆଙ୍କେ ମୋର
ଦରଦୀ ତୁଳିକା ।

"ଅର୍ପିତା" - ଜାନୁଆରୀ-ମାର୍ଚ୍ଚ ୨୦୦୩



# ଋତୁ

ଋତୁ ଆସେ ଋତୁ ଯାଏ
ଦେଖେନା ଏ ଆଖି
ପ୍ରିୟା ଯେବେ ଆସେ ମୋର
ସବୁ ଋତୁ ନେଇ
ଆଖି ରହେ ଲାଖି ।

ଫୁଲ ହସେ ଜହ୍ନ ହସେ
ଦେଖେନା ଏ ଆଖି
ପ୍ରିୟା ଯେବେ ହସେ ମୋର
ବାସର ରାତିରେ
ଲାଜ ଆଖି ଟେକି
କୁତୁକୁତୁ ହୁଏ ମୋର ଛାତି ।



[illegible] - ୯/୩/୨୦୦୨

# କଥା

ଚୁପିଚୁପି କାନ କୁହା କଥା
ସନ୍ଦେହର ବୀଜ ଦିଏ ବୁଣି ।

ହସହସ ଓଠ ଝରା କଥା
ବାରବାର ମନ ହୁଏ ଗୁଣି ।

ଛନଛନ ଚାହାଣିର କଥା
ପ୍ରଣୟର ଜାଲ ଦିଏ ଟାଣି ।

ରଗରଗ ଟାଇଁଟାଇଁ କଥା
ହୃଦୟକୁ ଦିଏ ଖାଲି ହାଣି ।

କାଳାନ୍ତର - ୧୪/୧୨/୨୦୦୧



# ଦେହ

ଦେହ ପାଇଁ ଦେବାଳୟ
ଦେହ ପାଇଁ ମଶାଣି ।
ଦେହ ପାଇଁ ପ୍ରୀତିପର୍ବ
ଦେହ ପାଇଁ ରୋଷଣି ।
ଦେହ ପାଇଁ କବିର କବିତା
ଦେହ ପାଇଁ ଶିଳ୍ପୀର ତୁଳିକା ।
ଦେହ କା' ଅନ୍ଧାରି ଗୁମ୍ଫା
କା'ର ରାକା ରଜନୀ ।
ଦେହ ଅଟେ ମଧୁବନ
ଦେହ ଅଟେ ସାହାରା ।
ଦେହ ପୁଣି ପିରାମିଡ୍
ଦେହ ପୁଣି ଏଲୋରା ।
ଦେହ କାର ସଖା ପୁଣି
ଦେହ କାର ସ୍ୱଜନୀ ।



"କାଳାନ୍ତର" - ୨୬/୧୧/୨୦୦୦

# ଶଯ୍ୟା

ଜନନୀ ଜଠରୁ ଜନ୍ମ ଲଭି ଶିଶୁ
ଲୋଡ଼ିନିଏ ମାଟି ଶଯ୍ୟା ।
ପୂରା ଯଉବନେ ପ୍ରଣୟ ଆତୁରେ
ପ୍ରିୟା ସାଥେ ମଧୁ ଶଯ୍ୟା ।

ଜୀବନଟା ତା'ର କଟିଯାଏ ପାଇ-
କଣ୍ଟକ ବା ପୁଷ୍ପ ଶଯ୍ୟା
ମରଣ ଆସିଲେ ମଶାଣିରେ ମିଳେ
ତାକୁ ପୁଣି ଅଗ୍ନି ଶଯ୍ୟା ।

"ଆଜିକାଲି" - ଶାରଦୀୟ ୨୦୦୩



# ହସ : ଲୁହ

ଦରଦୀ ଆଖିର ସେଇ ଦୁଇଟୋପା ଲୁହ
ତାର ଇତିହାସ ଆହା କି ଆନନ୍ଦମୟ

ଶୁଖିଲା ଓଠର ସେଇ ଛଳନାର ହସ
ଅମୃତ ସୂଚନା କାହିଁ; ଭରା ଖାଲି ବିଷ ।



# ଭଲ : ଭୂଲ

ଭଲ ଆଉ ଭୂଲ
ଦୁଇଟି ଶବ୍ଦ ଭିତରେ
ଗୋଟିଏ ମାତ୍ରାର ଫରକ ।

ଅଥଚ ଦୁଇଟି କାର୍ଯ୍ୟ ଧାରାରେ
ତଫାତ୍ ଅନେକ ।

"ଆଜିକାଲି" - ୩୮/୨୦୦୩



# ମୋର : ମୋର

ସଦାବେଳେ କହିଲ
ମୋର ମୋର
ମୋର ଘର
ମୋର ବ୍ୟାଙ୍କ ବାଲାନ୍ସ
ମୋର କାର୍ ।

କେତେବେଳେ ଆଉ କହିବ
ହେ ଈଶ୍ୱର
ମୋ ପାଖେ ଯାହା ଅଛି
ସେ ସବୁ ତୁମର
ଆଉ ମୁଁ ବି ତୁମର ।



"ଅଭିବ୍ୟକ୍ତି" - ୪/୧୨/୨୦୦୩

# ଛୁରୀ : ଛୁରୀ

ଛୁରୀ କାଟେ ଫଳ
ଛୁରୀ କାଟେ ପରିବା
ଛୁରୀ ଏକ ପୋର୍ଟେବଲ୍ ପନିକି
ଭାରୀ ଉପକାରୀ ।

*    *    *

ଛୁରୀ କାଟେ ବେକ
ରକ୍ତେ ଖେଳେ ହୋରି
ବଡ଼ ସେ ନୃଶଂସ
ବଡ଼ ଦୁରାଚାରୀ ।

"କାଳାନ୍ତର" - ୨୮/୮/୨୦୦୧



# ପ୍ରେମିକା : ତକିଆ

ପ୍ରେମିକା ସଙ୍କୋଚ କରେ
ପାତିବାକୁ କୋଳ
ସଙ୍କୋଚ ବି କରେ ଖୁବ୍
ଛୁଇଁବାକୁ ଓଠ ।
ହେଲେ..
ତକିଆ ଟି ମୋର
ବଶମ୍ବଦ ପ୍ରିୟତମା ପରି
ସର୍ବସ୍ୱ ଓଜାଡ଼ି ଦିଏ
ଦେବା ପାଇଁ ସୁଖନିଦ୍ରା ଟିକେ ।



"କାଳାନ୍ତର" - ୩୦/୧୦/୦୧

# ବାର୍ତ୍ତାବହ

ପଡ଼ୋଶୀଟି
ସାମାନ୍ୟ କୋହଲା ପାଗରେ
ପାଖକୁ ଆସେନା
ଖବରଟି ଦେବା ପାଇଁ
ହେଉପଛେ ନିହାତି ଜରୁରୀ ।

ପଛାଇ ଯାଏନା କେବେ
ପୋଷ୍ଟକାର୍ଡ ଟିଏ ।
ନିଦରୁ ଉଠାଇ ଦିଏ,
ଟେଲିଫୋନ ମଧ୍ୟ
ବାଜିଉଠି କ୍ରିଂକ୍ରିଂକ୍ରିଂ ।





# ନିଆଁ

ନିଆଁ
କେବେ ତୁ ଇର୍ଷାରେ ଜାଳି
କରୁ ସର୍ବନାଶ ।

କେବେ ତୁ ହୋମ କୁଣ୍ଡରେ
ଦେଉ ପୂତ ସ୍ପର୍ଶ ।



"କାଳାନ୍ତର" - ୪/୧୦/୨୦୦୧

# ଛଳନା

ଅସରାଏ କୁମ୍ଭୀର କାନ୍ଦଣା
ଚଳାଏ ଦେଖାଣିଆ ହସ
ମୁଠାଏ ମିଛିମିଛିକା ସାନ୍ତ୍ୱନା
ଆଞ୍ଜୁଳାଏ ଭୂଲାଣିଆ ସ୍ନେହ
ଏସବୁର ମିଛ ସମାରୋହ
ବୋଧହୁଏ ଛଳନାର ନାମ ।

"କାଳାନ୍ତର" - ୨୪/୮/୨୦୦୨



# ଶଙ୍ଖା - ସିନ୍ଦୂର

ହାତେ ଥିଲେ ଦୁଇପଟ ଶଙ୍ଖା
ସତୀତ୍ୱର ପାଇଁ ସଦା ଶଙ୍କା ।

ଫାଟିଗଲେ ଦୁଇ ହାତୁ ଶଙ୍ଖା
ସୀମନ୍ତ ସିନ୍ଦୂର ଗାର ପଡ଼ିଆସେ ଫିକା
ଜିଇବାଟା ଲାଗେ ଫାଙ୍କାଫାଙ୍କା ।



# ମେଘ : ପ୍ରେମିକ

ମେଘ ଯେତେ କାନ୍ଦିଲେ ବି
ଲୁହ ତା ସରେନା
ମାଟିର ପରଶ ପାଇ ହୁଏ ଆନମନା ।

ପ୍ରେମିକ ଆଖିର ଲୁହ ବିରହ ଝରଣା
ପ୍ରେମିକାର ପାଦ ଦୁଇ ଟିକେ ବି ଧୁଏନା
ହାଏ, କୁହ ଇଯେ କେଉଁ ବିଡ଼ମ୍ବନା ।

"କାଳାନ୍ତର"



# ଅନ୍ଧକାର : ଆଲୋକ

ଖୁବ୍ ଦରକାର
ଅଶ୍ଳୀଳ ଅନ୍ଧକାର
ନିଷ୍ପାପ ଭ୍ରୂଣ ସଂଘର ପାଇଁ ।

ଖୁବ୍ ଦରକାର
ଦୀପ୍ତିମାନ ସୂର୍ଯ୍ୟ
ସୃଷ୍ଟିର ସବୁଜ ସ୍ୱାକ୍ଷର ପାଇଁ ।



"ଧ୍ୱନି-ପ୍ରତିଧ୍ୱନି" – ୭/୬/୨୦୦୧



# ପରଦା

ଆଖି ଓ ସ୍ୱପ୍ନ ମଝିରେ
ରାତି ହିଁ ପରଦା
ପ୍ରୀତି ଓ ମନ ମଝିରେ
ସନ୍ଦେହ ପରଦା ।

“ଧ୍ୱନି-ପ୍ରତିଧ୍ୱନି”





# ରଥ

ବଡ଼ଦାଣ୍ଡେ ଚଲେ ରଥଟିଏ
ନାଆଁ ନନ୍ଦିଘୋଷ
ଦେବା ପାଇଁ ଭକ୍ତ ହୃଦେ
ଶାନ୍ତି ଓ ସନ୍ତୋଷ ।

ରଥଟିଏ ଚଲେ ଇନ୍ଦ୍ରପ୍ରସ୍ଥେ
ନାଁ ରାମ-ରଥ
ବୁଣିବାକୁ ଜନତା ହୃଦୟେ
ସଂପ୍ରଦାୟ ବିଷ ।

ଦୁଇଟି ରଥ ମଧ୍ୟରେ
ଫରକ ଅନେକ
ପାତାଳୁ ଆକାଶ ।



"ଅଞ୍ଜଳି" - ୧୨-୭-୦୨

# ଲୁଣ

ଲୁଣ ପାଣିରେ ମିଶି
ହରାଏ ତା' ରୂପ ।
କିନ୍ତୁ ରଖିଥାଏ
ଅକ୍ଷୁର୍ଣ୍ଣ ତା ଗୁଣ ।

ମଣିଷ ନିଶା ପାଣିରେ ମିଶଇ
ହରାଏ ତା ସବୁକିଛି
ରୂପଗୁଣ ମଣିଷ ପଣିଆ
ମଣିଷଟା ଲୁଣଠାରୁ ହୀନ ।

"ଧ୍ୱନି-ପ୍ରତିଧ୍ୱନି" - ୧୭-୧-୨୦୦୨



# ବନ୍ୟା

ରାଜ୍ୟରେ ନଦୀର ବନ୍ୟା
ନଦୀରେ ବୃଷ୍ଟିର ବନ୍ୟା
ଆଖିରେ ଲୁହର ବନ୍ୟା
ନେତାଙ୍କ ବିବୃତି ବନ୍ୟା
କେଉଁଠି ରିଲିଫ ବନ୍ୟା
କେଉଁଠି ହଡ଼ପ ବନ୍ୟା
ଆସୁଏ କବିତା ବନ୍ୟା
ଛୁଟାଇ ଶୋକର ବନ୍ୟା
ଆମେ ତ ହୋଇବା ଧନ୍ୟା ।



"କାଳାନ୍ତର" - ୧୦/୨/୨୦୦୨

# ପ୍ରୀତି

ପ୍ରୀତି....
ଖିଲିଖିଲି ହସୁଥିବ
କଇଁଫୁଲ ରାତି ।
ପ୍ରୀତି...
କଇଁ କଇଁ କାନ୍ଦୁଥିବ
ଶ୍ରାବଣରରାତି ।
ପ୍ରୀତି...
ମାୟା ଘେରା କାନନରେ
ଚଞ୍ଚଳ ହରିଣୀ ।
ପ୍ରୀତି ...
ମରୁ ହାହାକାରେ ଆହା
'ଶୁଷ୍କ ସ୍ରୋତସ୍ୱିନୀ'।

"ତାଜା ସମସ୍ୟା" - ଶାରଦୀୟ ସଂଖ୍ୟା ୨୦୦୨



# ପ୍ରେମ ଚାରି ପ୍ରହର

ଆଖି ଆଖିକୁ ଡାକେ
ସକାଳ ।
ଓଠ ଓଠକୁ ଛୁଏଁ
ମଧ୍ୟାହ୍ନ ।
ପାପୁଲି ଲୁହକୁ ପୋଛେ
ସାୟାହ୍ନ ।
ସ୍ମୃତି ଶେଯରେ ଶୁଏ
ନିଶାର୍ଦ୍ଧ ।
ପୁନଶ୍ଚ ପ୍ରଭାତ କାହିଁ ?
ଆସିବ କି ଆଉ !



"କାଳାନ୍ତର" - ୨୫/୩/୨୦୦୨

# ସ୍ମୃତି

ନିଛାଟିଆ ସମୟର
ଶୂନ୍ୟତା ଗର୍ଭରୁ
ନିବିଡ଼ ପ୍ରେମର ତୁମ
ଶେଷ ଆଲିଙ୍ଗନ
ଏବେ ବି ଜଳୁଛି ସାଥି
ଭଙ୍ଗା ଛାତି କୋଣେ
ଦିକ୍ ଦିକ୍ ହତାଶା ଜ୍ୱଳନ ।

ଭୂଲିବାକୁ ଚହିଁଲେ ବି
ଭୂଲିତ ହୁଏନା
ସେ ଯେ ମୋର ପ୍ରିୟତମ
ସ୍ମୃତି ଅମଳିନ ।

"ଧ୍ୱନି ପ୍ରତିଧ୍ୱନି" - ୪/୪/୨୦୦୨



# ଋତୁ : ରାସ ଓ ତ୍ରାସର

ଶରତର ପୁନିଅଁ ଜୋଛନା
କୁମୁଦର ପ୍ରଣୟ ବିଳାସ
କୁଆଁରୀ ମନରେ ଜାଗେ
ପୀରତିର ରାସ ।

ଶରତର ଶାରଦୀୟ ରାତେ
ଯଦି କେଉଁ କୁଆଁରୀର
ହୁଏ ବଧୁବେଶ
ମନେତାର ଯୁଗବତ୍
ଆଶଙ୍କା ଓ ତ୍ରାସ
ଯୌତୁକ ଜୁଇରେ ଅବା
ହୋଇବ ପାଉଁଶ ।



"ଧ୍ୱନି ପ୍ରତିଧ୍ୱନି" - ୧/୧୦/୨୦୦୧

# ନିଆଁ : ପାଣି

ପାଣି
ଗଙ୍ଗାରେ ଥିଲେ ପବିତ୍ର
ନର୍ଦ୍ଦମାରେ ଦୂଷିତ
ଆଖିରେ ଲୋତକ
ତୃଷ୍ଣାରେ ଅମୃତ ।

ନିଆଁ
ଆଖିରେ ଥିଲେ କ୍ରୋଧ
ଛାତିରେ ଥିଲେ ଖେଦ
ଏନ୍ତୁଡ଼ିରେ ହର୍ଷ
ଶ୍ମଶାନେ ପାଉଁଶ ।

"ପ୍ରଜାତନ୍ତ୍ର ସାପ୍ତାହିକୀ" : ୭-୧୩ ଡିସେମ୍ବର ୧୯୯୭



# ଶେଯ

ଶେଯ
ଏନ୍ତୁଡ଼ି ଘରେ ଶିଶୁର
ମାଆର ଉଷୁମ କୋଳ ।

ଶେଯ
ବାସର ଘରେ ପ୍ରିୟାର
ପ୍ରିୟର ଉଷୁମ କୋଳ ।

ଶେଯ
ଶ୍ମଶାନରେ ମଣିଷର
ଜୁଇର ଉଷୁମ କୋଳ ।


"ପ୍ରଜାତନ୍ତ୍ର ସାପ୍ତାହିକୀ" - ୧୧-୧୭ ଅଗଷ୍ଟ ୨୦୦୨



# ଜୀବନ

କିଛି ସୁଖର ମିଶାଣ
କିଛି ଦୁଃଖର ଫେଡ଼ାଣ
କିଛି ଲୁହର ଗୁଣନ
କିଛି ହସର ହରଣ
ଏଇ ବୋଧେ ଜୀବନର
ଅସମାହିତ ସମୀକରଣ ।

"ପ୍ରଜାତନ୍ତ୍ର ସାପ୍ତାହିକୀ" - ଜୁଲାଇ ୩୦ - ୧୯୯[illegible]





# ମାଆ

ବିଷ ପିଇ ପିଇ
ଅମୃତର ଚୁମାଟିଏ
ଦେଇପାରେ କେବଳ ମାଆର ଓଠ ।

ଏଣୁ
ଅନ୍ତିମ ଶେଯରେ
କାନପାଶେ ଶୁଭି ଶୁଭି ଯାଏ
ମାଆର ସେ ସ୍ନେହବୋଳା ଡାକ ।



ପ୍ରଜାତନ୍ତ୍ର ସାପ୍ତାହିକୀ - ୫-୧୧ ଜାନୁଆରୀ - ୧୯୯୭

# ବାର୍ତ୍ତା

କୁଆଁ କୁଆଁ ରାବ ଦିଏ
ଜୀବନର ଆଗମନୀ ବାର୍ତ୍ତା ।

ଶାହାନାଇ ସୁରେ ସୁରେ
ଜୀବନର ସର୍ଜନାର ବାର୍ତ୍ତା ।

'ରାମ ନାମ ସତ୍ୟ ହଏ'
ଜୀବନର ବିଦାୟର ବାର୍ତ୍ତା ।

ପ୍ରଜାତନ୍ତ୍ର ସାପ୍ତାହିକୀ - ୭-୧୩ ଫେବୃୟାରୀ - ୧୯[illegible]



# ପ୍ରେମର ପରିଭାଷା

ଆକାଶୁ ଝରିଲେ ଜଳ
ନାଆଁ ତାର ବର୍ଷା ।

ଆଖିରୁ ଝରିଲେ ନିଆଁ
ନାଆଁ ତାର ଈର୍ଷା ।

କଣ୍ଠକୁ ଘେରିଲେ ଶୁଷ୍କତା
ନାଆଁ ତାର ତୃଷା ।

ବର୍ଷା-ଈର୍ଷା-ତୃଷା
ଇଏ ପ୍ରେମର ପରିଭାଷା ।



ପ୍ରଜାତନ୍ତ୍ର ସାପ୍ତାହିକୀ - ୨-୮ ଫେବୃୟାରୀ ୨୦୦୩



# ଜଳ

ଆକାଶୁ ଝରିଲେ ଜଳ
ନାଁ ତା' ବରଷା
ମେଣ୍ଟାଏ ସେ ମାଟିର ପିପାସା ।

ଆଖିରୁ ଝରିଲେ ଜଳ
ନାଁ ତାର ଲୁହ
କହେ ସିଏ ବୁକୁ ତଳ ଭାଷା ।

ପ୍ରଜାତନ୍ତ୍ର ସାପ୍ତାହିକୀ - ୮-୧୪ ଫେବୃୟାରୀ ୨୦୦୪





# ପ୍ରୀତି

ପ୍ରୀତି
ଖିଲିଖିଲି ହସୁଥିବା
କଇଁଫୁଲ ରାତି
ବଢ଼ାଏ ସେ ଛାତି ତଳ ତାତି ।

ପ୍ରୀତି
କଇଁକଇଁ କାନ୍ଦୁଥିବା
ଶ୍ରାବଣର ରାତି
ଝୁରି ମରେ ଲୁହ ଭିଜା ଆଖି ।

ପ୍ରୀତି
ମାୟାଘେରା କାନନରେ
ଚଞ୍ଚଳ ହରିଣୀ
ଚିତ୍ତ ଆହ୍ଲାଦିନୀ ।

ପ୍ରୀତି
ମରୁ ହାହାକାରେ ଆହା
ଶୁଷ୍କ ସ୍ରୋତସ୍ୱିନୀ
ନିଶବ୍ଦ ରାଗିଣୀ ।



ଆଧୁନିକ - ଶାରଦୀୟ-୨୦୦୩

# ଚିଠି

ଚିଠି
ଦେବତାଙ୍କୁ ଭକ୍ତିର ।

ଚିଠି
ପ୍ରେମିକାକୁ ସନ୍ଦେହର ।

ଚିଠି
ପ୍ରିୟାକୁ ବିଶ୍ୱାସର ।

ଚିଠି
ସନ୍ତାନକୁ ସ୍ନେହର ।

ଚିଠି
ନିଜକୁ ଆଶ୍ୱାସର ।

ଆଧୁନିକ - ଶାରଦୀୟ ୨୦୦୩



# ହସ : ଲୁହ

ଫୁଲ ଫୁଟିଲେ ଲତାର ହସ
ଝାଉଁଳିଲେ ଲୁହ ।

ସୂର୍ଯ୍ୟ ଉଇଁଲେ ପ୍ରାଚୀର ହସ
ପ୍ରତୀଚିର ଲୁହ ।

ଜୁଆରରେ ବେଳାର ହସ
ଭଟ୍ଟାରେ ଲୁହ ।

ମିଳନରେ ପ୍ରେମର ହସ
ବିରହରେ ଲୁହ ।

ଏସବୁରୁ ଖୋଜିବସେ
ଭାବୁକ ହୃଦୟ
ସୃଷ୍ଟି ସ୍ଥିତି ଲୟ ।



କସ୍ତୁରୀ - ରଥଯାତ୍ରା ସଂଖ୍ୟା ୨୦୦୩

# ମନ୍ଦିର

ମନ୍ଦିର
ଭୀରୁ ଦେବତାର ଆଶ୍ରୟସ୍ଥଳ
କିଛି ନକରି ଅଳସୁଆ ହୋଇ
ସିଂହାସନେ ଢୋଳେଇ ଢୋଳେଇ
ଧୂପଦୀପ ନଇବେଦ୍ୟ ପାଇଁ
ସଦା ସେ ଆକୁଳ ।

ନିରନ୍ତର ବଚସ୍କର
ଭକ୍ତଙ୍କର ଭିଡ଼ ।



# ମଶାଣି

ଛଅଖଣ୍ଡି କାଠ ସାଥେ
ହାଡ଼, ଚର୍ମ, ରକ୍ତ ଓ ମାଉଁଶ
ଜଳିପୋଡ଼ି ହୁଅଇ ପାଉଁଶ ।

ଧନ, ଜନ, ଖ୍ୟାତି ଓ ପୌରୁଷ
ନିନ୍ଦା ଅପବାଦ ହିଂସା ଘୃଣା ଅପଯଶ ।
ସବୁ ସେଠି ଏକାକାର
ବାରିହୁଏ ନାହିଁ କିଛି
ବିଷ ବା ପୀୟୁଷ ।



କସ୍ତୁରୀ - ରଥଯାତ୍ରା ସଂଖ୍ୟା ୨୦୦୩

# ଅଗ୍ନି

ଏନ୍ତୁଡ଼ି ଶାଳରେ ଅଗ୍ନି
ହୋମାଗ୍ନି ପରି
ଶୁଦ୍ଧ ଓ ପବିତ୍ର ।

ବିବାହ ବେଦୀରେ ଅଗ୍ନି
ଯୌବନର କାମାଗ୍ନିକୁ
କରେ ପ୍ରଜ୍ୱଳିତ ।

ମନତଳେ ଜଳେ ଯେଉଁ ଅଗ୍ନି
ବନାନୀଠୁ ଅଧିକ ଉତ୍ତପ୍ତ ।

ମଶାଣିରେ ଜଳେ
ଶେଷ ଚିତାଗ୍ନି
ସକଳ କର୍ମ ଧାରାରେ
ସେ ଯେ ସତ୍ୟପାଠ ।

ପ୍ରଜାତନ୍ତ୍ର ସାପ୍ତାହିକୀ- ୨-୮ ସେପ୍ଟେମ୍ବର ୨୦୦୩



# ଧୂଳି

ଧୂଳି ଆକାଶରେ ଥିଲେ
ଜଳବିନ୍ଦୁ ବାନ୍ଧି ରଖି
କରିଥାଏ ବର୍ଷା ।

ଧୂଳି ମରୁଭୂଇଁରେ ଥିଲେ
ବଢ଼ାଏ ଖାଲି ପଥିକୀର ତୃଷା
ଧୂଳି ଜୀବାଣୁ ଯୁକ୍ତ ହୋଇ
ବଢ଼ାଇଥାଏ ବ୍ୟାଧି ।

ଧୂଳି ଗୁରୁଜନ ପାଦେ ଥାଇ
ଦିଅଇ ଆଶିଷ
ସାଧନାରେ ଆଣିଦିଏ ସିଦ୍ଧି ।



ଆମ ସମୟର ସ୍ୱର୍ଣ୍ଣ ଶଙ୍ଖ – ଫେବୃୟାରୀ ୨୭-ମାର୍ଚ୍ଚ ୪

# ବନ୍ଧନ

ମାତୃଗର୍ଭରୁ ଅଗ୍ନିଗର୍ଭ ଯାଏ
କେବଳ ବନ୍ଧନ ।

ମୁକ୍ତି ପାଇଁ ଭଗବାନଙ୍କୁ
ପ୍ରାର୍ଥନା-ପ୍ରୟାସ
ଭକ୍ତ ଭଗବାନ ମଧ୍ୟରେ
ଏକ ବନ୍ଧନ ।

ଏଣୁ,
ଭଗବାନ
ମୁକ୍ତିର ପଥ ଦେଖାଇବା ଆଳରେ
ବାନ୍ଧି ରଖିଛନ୍ତି ସିନା ।

ଜନସୁଧା - ଜୁନ୍ ୨୦୦୦



# ବୋରଝାନ୍‌ଜି

ବୋରଝାନ୍‌ଜି ମାଡ଼ିଯାଏ କେଇଟା ଦିନରେ
ନିର୍ମଳସରସୀ ଜଳ ହୁଅଇ ଦୂଷିତ ।

ଦୁର୍ଗୁଣ ବି ବ୍ୟାପିଯାଏ କେଇଟି ମୁହୂର୍ତ୍ତେ
ନିର୍ମଳ ହୃଦୟ ଆହା ହୁଅଇ ବିଷାକ୍ତ ॥



# ଆଖୁରସ

ଆଖୁରସ ଦେଖିବାକୁ ନୁହେଁ ସୁନ୍ଦର
ମୋଡ଼ିମାଡ଼ି ଦଳି ମକଚି ହୋଇ
ନିଗାଡ଼ି ଦିଏ ସେ ରସ ।

ମୁଖ ପାଇଁ ରୁଚିକର
ଦେହ ପାଇଁ ହିତକର ।

ଭାବିନିଅ ଥରେ
ପିଇବାକି କୋଲ୍‌ଡ୍ରିଙ୍କ୍‌ସ
ଅବା ଆଖୁରସ ।



ମନସ୍ୱିନୀ



# ଅଛି : ନାହିଁ

ପିଚକାରି ହାତେ ଅଛି
ନାହିଁ ତହିଁ ରଙ୍ଗ ।

ନୁପୁର ପାଦରେ ଅଛି
ନାହିଁ ତହିଁ ଛନ୍ଦ ।

କାନନେ ମର୍ମର ନାହିଁ
ଯମୁନାରେ ନୀର ନାହିଁ
ବଂଇଶୀରେ ସ୍ୱର ନାହିଁ
ଚାହାଣିରେ ତୀର ନାହିଁ
କିମିତି ଭାଙ୍ଗିବି ରାଇ
ସୁକୁମାରୀ ଦମ୍ଭ ।

କଦମ୍ବ ଫୁଟେନା ଆଜି
ମଳୟ ଛୁଟେନା ଆଜି
ଜୋଛନା ଝରେନା ଆଜି
କାମନା ସ୍ଫୁରେନା ଆଜି
କିମିତି ପାଇବି ରାଇ ପ୍ରୀତି ଅନୁଭବ ।



[illegible] - ଜାନୁଆରୀ ୨୦୦୦

# ନୂଆ ପ୍ରବଚନ

ଶ୍ରମିକ ଦେହର ଝାଳେ
ଲାଗେ ଯେବେ କୋଇଲାର ରେଣୁ
କାରଖାନା ହୁଏ କାମଧେନୁ
ଯାହା ଆମ ସୌଭାଗ୍ୟ ବଢ଼ାଏ ।

ମାଲିକ ଦେହରୁ ଟୋପେ
ବହେନା ତ ଝାଳ
ଲାଗିଥାଏ ବିଳାସର ସ୍ୱପ୍ନ ରେଣୁ
ଆଖି ଆଗେ ଲକ୍ଷେ ଇନ୍ଦ୍ରଧନୁ
ଯାହା ତାକୁ ନିଷ୍ଠୁର ସଜାଏ ।

ବ୍ୟାସନଗର - ୩ୟବର୍ଷ ୧ ୨ ସଂଖ୍ୟା ୨୦୦୬



# ଦେହ ଦେଉଳର ପୂଜା

ମନ୍ଦିରକୁ ଯାଅ
ଅବା
ଗୁରୁଦ୍ୱାରା ଯାଅ ।
ମସ୍‌ଜିଦ୍ ଯାଅ
ଅବା
ଗୀର୍ଜାପୀଠ ଯାଅ
ଦେହ ଦେଉଳର ପୂଜା
କରୁଛି ଅଥୟ,
ଚରିଦିଗେ ରକ୍ତମାଂସ ଧୂପ ମହମହ ।



ବ୍ୟାସନଗର - ୨୦୦୪

# ପୂଜା

ପୂଜା, ମନ୍ଦିରରେ
ଭକ୍ତିର ।
ପୂଜା, ହୃଦୟରେ
ପ୍ରେମର ।

ପୂଜା ବୁକୁରେ
କୋହର ।
ପୂଜା ମନରେ
ସ୍ମୃତିର ।

କସ୍ତୁରୀ - ୧୯୯୪



# ବାସ୍ନା

ବାସ୍ନା ବଗିଚାରେ
ଫୁଲର ।
ବାସ୍ନା ବାସର ଘରେ
ଗଭାର ।

ବାସ୍ନା ମନ୍ଦିରରେ
ନୈବେଦ୍ୟର
ବାସ୍ନା ମଶାଣିରେ
ନିର୍ବାଣର ।



# ତୁ ତ ଗୋଟେ...

ତୁ ନିଜେ ତ ଗୋଟେ ଫୁଲ
ତୁ କିଆଁ ଯାଉ  ବଗିଚ୍ଚ ପୁଣି
ତୋଳିବା ପାଇଁ ଫୁଲ ।

ତୁ ତ ଗୋଟେ ନଦୀ
ବହିତୁ ଗଲେ ମନର ତଳେ
ମରମଯାଏ ଭେଦି ।

ତୁ ତ ଗୋଟେ ପରୀ
ତୁ କିଆଁ ଖୋଜୁ ଜୋଛନା ରାତେ
ଆସିବ ନୀଳ ପରୀ ।

ସାହିତ୍ୟ ବାର୍ତ୍ତା - ଚତୁର୍ଥ ବର୍ଷ, ୭ମ



# ସେଇ ଯୋଗ୍ୟ ଛାତ୍ର

କାଠିଟିଏ
ଜଳିଜଳି ବିତରିଲେ ବାସ
ହୁଏ ସିଏ ଧୂପ ।

ଶିଖାଟିଏ
ଜଳିଜଳି ବିତରେ ଆଲୋକ
ନାଆଁ ତାର ଧୂପ ।

କଢ଼ିଟିଏ
ଫୁଟିଫୁଟି ବିଛୁଡ଼େ ମହକ
ନାଆଁ ତାର ପୁଷ୍ପ ।

ପିଲାଟିଏ
ଗୁରୁଙ୍କ ଯେ ବଢ଼ାଏ ମହତ
ସେଇ ଯୋଗ୍ୟଛାତ୍ର ।



ସୌରଭ ପ୍ରତିଭା - ୧୯୯୯

# ବିନ୍ଦୁ

ମୁଁ ଜାଣିଥିଲି ତୁମକୁ
ତୁମର ଦୈର୍ଘ୍ୟ ପ୍ରସ୍ଥ ଉଚ୍ଚତା ନାହିଁ
ଖାଲି ଅଛି ଅବସ୍ଥିତି ।

ଏବେ ଜାଣୁଛି
ତୁମର ଇତିହାସ ଅଛି
ଭୂଗୋଳ ଅଛି
ହସେଇ ଦେବାର ମମତା ଅଛି
କନ୍ଦେଇ ଦେବାର କ୍ଷମତା ବି ଅଛି ।

ଶ୍ରୀ ଧାରା – ମେ, ୧୯୯୬



# ମନ

ରାତିର ଅନ୍ଧାରଠାରୁ
ଖୁବ୍ ଗାଢ଼ ମନର ଅନ୍ଧାର,
ଯେଉଁଥିରେ ଅଶ୍ଳୀଳତା
ବସାବାନ୍ଧେ ବେଶୀ ।

ଅସ୍ତ୍ରାଘାତେ ଝରିପାରେ
କେଇବୁନ୍ଦା ରକ୍ତ
ମନର ଆଘାତେ କିନ୍ତୁ ଝରିଯାଏ
ଯେତେକ ଲୋତକ
ସାତସିନ୍ଧୁ ଜଳଠାରୁ ଲବଣାକ୍ତ ବେଶୀ ।



# ଜୀବନ : ସପନ : ମରଣ

ମାଟି ଗୋଡ଼ି ଧୂଳି ନିଆଁ ପାଣି ଓ ପବନ
ଡାଲି ଆଳୁ ଚାଉଳ ତେଲଲୁଣ ରାଗରୁଷା
ହସ କାନ୍ଦ ଫେଣ୍ଟାଫେଣ୍ଟି ନେଇ ତ ଜୀବନ ।

ଫୁଲ ବାସ ମହମହ ପକ୍ଷୀ କୁହୁତାନ
ଇନ୍ଦ୍ରଧନୁ ସାତରଙ୍ଗ ନୀଳାକାଶ ଆଉ ରୂପାଜହ୍ନ
ମଧୁ ପ୍ରୀତି ନେଇତ ସପନ ।

ଘନ ଅନ୍ଧକାର ଘେରା
ଶୀତଳ ମଶାଣି ତୀରେ
ହଜିଯାଏ ଜୀବନ ଓ ସ୍ୱପ୍ନ
ଚିତାର ମଶାଲ ଜାଳି
ଆସେ ଏ ମରଣ
ଯାହା ଅଟେ ସତ୍ୟ ଚିରନ୍ତନ ।

ସ୍ମୃତିଲିପି - ୪ର୍ଥ ବର୍ଷ ୨ୟ ସଂଖ୍ୟା ୧୯୯[illegible]

# ଲୋକବନ୍ଧୁ : ଗୋପବନ୍ଧୁ

ଗୋପବନ୍ଧୁ ଥିଲେ ଆମ ସଦା ଲୋକବନ୍ଧୁ
ଲୋକବନ୍ଧୁ ନାମେ ଏବେ ବନ୍ଧୁ ଗୋପବନ୍ଧୁ ।

ଗୋପବନ୍ଧୁ ସଦା ଥିଲେ ବିପଦର ବନ୍ଧୁ
ଏବେ ଗୋପବନ୍ଧୁମାନେ ସଂପଦର ବନ୍ଧୁ ।

ଲୋକବନ୍ଧୁ ଯେବେ ହେବେ ଲୋକଙ୍କର ବନ୍ଧୁ
ତହିଁରୁ ଲଭିବେ ଶାନ୍ତି ସ୍ୱର୍ଗୁ ଗୋପବନ୍ଧୁ ।

ଲୋକବନ୍ଧୁ - ୧ମ ବର୍ଷ ୪ୟ ଖଣ୍ଡ [illegible]



# ରୂପାନ୍ତର

ଭକ୍ତ ଜଣେ ଡାକିଥିଲେ
ଜଗନ୍ନାଥ ଜଗନ୍ନାଥ
ମୋରଯିବା ଯାଏ
ଅଟକାଅ ନନ୍ଦିଘୋଷ ରଥ ।

ଏବେ ଡାକୁଛନ୍ତି ଭକ୍ତେ
ହେ ୱେବ୍‌ସାଇଟ୍
ହେ ଇଣ୍ଟରନେଟ୍
ଫେସନ ସୋ ଟିକେ ରଖରଖ
ଦେଖିବୁ ସୁନ୍ଦରୀଙ୍କର
କି ସୁନ୍ଦର ଆହା କ୍ୟାଟ୍ ୱାକ୍ !



ପ୍ରିୟପତ୍ର- ରଥଯାତ୍ରା ସଂଖ୍ୟା ୨୦୦୧



# ଦୁଃଖନାହିଁ

ମୋ ହୃତପିଣ୍ଡରୁ ତାଜା ରକ୍ତ ନେଇ
ହୋରି ଖେଳୁଥିବା
ଫଗୁଣକୁ ତୁମେ ଋତୁରାଜ କୁହ
ଦୁଃଖ ନାହିଁ ।

ମୋ ଗଳା ଟିପି
ଶ୍ୱାସରୁଦ୍ଧ କରୁଥିବା
ପବନକୁ ତୁମେ ମଳୟ କୁହ
ଦୁଃଖ ନାହିଁ ।



ବିବର୍ତ୍ତନ - ପୂର୍ଣ୍ଣ ସଂଖ୍ୟା ୧୯୯୬

# ସମ୍ପର୍କ

ସଂପର୍କ
ବନ୍ଧନର ସୂତ୍ର
ସ୍ନେହ ଶ୍ରଦ୍ଧା ପ୍ରୀତି ବୋଲା
ବୁକୁଝରା ରକ୍ତଭିଜା
ମମତା ସ୍ତବକ ।

ହେଲେ ସେ ସଂପର୍କ
କେମିତି ବ୍‌ଦଳିଯାଏ
ଅବିଶ୍ୱାସ- ସରୀସୃପ
ମାରିଯାଏ ଗରଳର
ଚୋଟ ପରେ ଚୋଟ
କରିଯାଏ ଜୀବନକୁ
ଅସହ କ୍ଷତାକ୍ତ !

ବିବର୍ତ୍ତନ - ୧ ୯ ୯୬



# ଫ୍ରିଜ୍

କେତେ ସତେଜ ରଖେ ଫ୍ରିଜ୍
ଶାକ୍ ସବ୍‌ଜି ମାଛ ମାଂସ
ସତେ ଅବା ଖାଦ୍ୟ ଆଉ ଖାଦ୍ୟପ୍ରାଣର
ଇଏ ଜୀବନ ଦାତା ।

ଅଥଚ
ଏଇ ଫ୍ରିଜ୍‌ଟିଏ ପାଇଁ
କେତେ ନବବଧୂ ଜୀବନଶିଖା
ଲିଭି ନଯାଏ ।
ଇଏ ପୁଣି ପାଲଟିଯାଏ
ଯୁବତୀ ମାରଣ ଯନ୍ତ୍ର ।



ବିବର୍ତ୍ତନ - ପୂର୍ଜାସଂଖ୍ୟା ୧୯୯୮

# ଟି.ଭି.

ଟି.ଭି. କେତେ ରଂଗୀନ ଛବି ଦେଖାଏ
ମନରେ ଜଗାଏ ଇନ୍ଦ୍ରଧନୁର ସ୍ୱପ୍ନ
ରଂଗୀନ କରିଦିଏ ଜୀବନ ।

ଏଇ ଟି.ଭି. ପୁଣି ଶିଖାଇଥାଏ
କିମିତି ନେବାକୁ ହୁଏ ଜୀବନ ।
ଟି.ଭି. ବୋଧେ
ଦୁଇ ପାଖ ଧାର ଥିବା
ଶାଣିତ କୃପାଣ ।

ବିବର୍ତ୍ତନ - ପୂଜାସଂଖ୍ୟା ୨



# ଧନ୍ୟ ସେଇ

ଧନ୍ୟ ସେଇ ଜନମ
ଯେ ଜନମେ ଖେଳିଯାଏ
କୋଟି ହୃଦେ ସ୍ପନ୍ଦନ ।

ଧନ୍ୟ ସେଇ ଯୌବନ
ଯା ପରଶେ ଫୁଟିଯାଏ
କୋଟି ପ୍ରୀତି କୁସୁମ ।

ଧନ୍ୟ ସେଇ ଜୀବନ
ଯେ ଜୀବନ ଦାନେ ହସେ
କୋଟି ଜନ ଜୀବନ ।

ଧନ୍ୟ ସେଇ ମରଣ
ଯେ ମରଣେ ଝରିଯାଏ
କୋଟି ଲୁହ ଶ୍ରାବଣ ।



ସୌରଭ- ଫେବୃୟାରୀ-ମାର୍ଚ୍ଚ ୧୯୮୧

# ଇଙ୍ଗିତ

ବହୁ ଭ୍ରମରକୁ ଉଦ୍‌ଭ୍ରାନ୍ତ କରୁଥିବା
ସେଇ ଦୁଷ୍ଟ ଫୁଲଠାରୁ
ଏଇ ଶାନ୍ତ କଣ୍ଟାଟି
ଖୁବ୍ ଭଲ ।

ଯେ ଅନେକ କଣ୍ଟାକୁ
ପାଦରୁ କାଢ଼ିବାରେ
ନିଜର ଶକ୍ତି ବିନିଯୋଗ ପାଇଁ
କୁଣ୍ଠିତ ହୁଏନା ।

ବହୁ ମନକୁ ପାଗଳ କରୁଥିବା
ସେଇ ଦୁଷ୍ଟ ହସଠାରୁ
ଖୁବ୍ ଭଲ
ଟୋପାଏ ଲୁହ
ଯା ଦେହରେ ଭରା
ଅନୁତପ୍ତ ସ୍ୱର୍ଗ ଗଭୀରତା ।

ସୌରଭ- ପୂଜାସଂଖ୍ୟା ୧୯୮୫



# ସୃଷ୍ଟି

କେତେ କଷ୍ଟକର
ହୁଏ ଯେଉଁ ସୃଷ୍ଟି ।

କେତେ ସହଜେ
କରୁ ଆମେ ଧ୍ୱଂସ ।

ଦେବତ୍ୱର ନିର୍ଦ୍ଦେଶକୁ
ଢାଙ୍କି ଦେଇ
ଆସୁରିକ ମାୟା ପଟଳରେ
ଡାକିଡାକି ନିଜ ସର୍ବନାଶ ।



# ଭିନ୍ନ ରୂପ

ବାହାରେ ମୁଁ ନେତା ବୋଲି
ପାଏ ଶହେ ସଲାମ ।

ଘରେ ମୁଁ ମାଲିକ ନୁହେଁ
ଜୋରୁ କା ଗୋଲାମ ।

ସୁଲେଖା - ଏପ୍ରିଲ୍-ସେପ୍ଟେମ୍ବର



# କବି : ଗୋଲାପ

ଏକ ହାତେ ବଂଶୀ
ଆରହାତେ କରବାଳ
ଏକ ହାତେ ଶଂଖ
ପୁଣି ଆରହାତେ ଢାଲ ।

ଡାଳ ବୃନ୍ତେ କଣ୍ଟା
ଆଉ ସୁବାସିତ ଦଳ
ତା ରଂଗ ଢଳଢଳ ।
ଏଥିପାଇଁ ଯୁଗେଯୁଗେ
କବି ଓ ଗୋଲାପ ମଧ୍ୟେ
ବନ୍ଧୁତା ନିବିଡ଼ ।



ଜନସୁଧା - ମଇ ୧୯୯୯

# ଏଇତ ସତ୍ୟ

କାଠିଟିଏ
ଜଳିଜଳି ବିତରିଲେ ବାସ
ନାଁ ତାର ଧୂପ ।
କଢ଼ିଟିଏ ଫୁଟିଫୁଟି ବିତରିଲେ ବାସ
ନାଁ ତାର ପୁଷ୍ପ ।
ଶିଖାଟିଏ
ଜଳିଜଳି ବିତରି ଆଲୋକ
ନାମ ବହେ ଦୀପ ।
ସ୍ନେହପ୍ରୀତି ମମତା ଉଜାଡ଼ି
ମିଶିଯାଏ ମାଟିରେ ତ
ଏଇ ମାଟି ଘଟ ।



# ଗ୍ରୀଷ୍ମ

ଗ୍ରୀଷ୍ମ ତୁମେ ଭାରୀ ଉଷ୍ମ
ଶୀତଳତା କର ଭସ୍ମ ।
ଗ୍ରୀଷ୍ମ ତୁମେ ଭୀମ ରୁଦ୍ର
ସ୍ନିଗ୍ଧ ଛାୟାକୁ କର ଧ୍ୱଂସ ।

ଗ୍ରୀଷ୍ମ ତୁମର ଏତେ କ୍ରୋଧ
ଯାହାର ଉତ୍ତାପେ ହୁଏ ଧୈର୍ଯ୍ୟର ଶେଷ
ତଥାପି ତୁମେ ଗ୍ରୀଷ୍ମ
ପଞ୍ଚଭୂତ ଶରୀର ନିମିତ୍ତ
ଅମୃତ ସଦୃଶ ।



# ଅଭାଗା

ଅଭାଗା ଭାଗ୍ୟବାନଟିଏ
କାରଣ
ଭାଗ୍ୟକୁ ନିନ୍ଦିବା ପାଇଁ
ସେ ବାରମ୍ବାର
ଭଗବାନଙ୍କୁ ମନେ ପକାଉଥାଏ ।

ଅଭାଗା ଦାର୍ଶନିକ ଟିଏ
କାରଣ ବଞ୍ଚିବାର ସଂଘର୍ଷ ପାଇଁ
ସେ ନୂଆ ରାହା ଖୋଜୁଥାଏ ।

ଅଭାଗା
ଉଦାସୀ ଶିଳ୍ପୀଟିଏ
କାରଣ ଗଢ଼ିବାର ସ୍ୱପ୍ନ ନେଇ
ବିଶୁ ଧର୍ମପଦ କୋଣାର୍କକୁ
ଜଳଜଳ ଚାହିଁ ରହିଥାଏ ।

କାଳାନ୍ତର- ୨୮.୬.୨୦୦୨



# ଅଭାବ

ମରୁଭୂମିରେ ଜଳର ଅଭାବ
ତଥାପି କେଉଁଠି କେମିତି
ଝରିପଡ଼େ, ଶିକର ଟୋପାଏ ।

ଅନ୍ଧାର ରାତିରେ ଆଲୋକର ଅଭାବ
ତଥାପି କେଉଁଠି କେମିତି
ଉଡ଼ିବୁଲେ ଜୁଲୁଜୁଲା ଟିଏ ।

ତୁନ୍ଦ୍ରାରେ ଉତ୍ତାପ ଅଭାବ
ତଥାପି କେଉଁଠି କେମିତି
ମିଳିଥାଏ ସିଲ୍ ଚର୍ବିଟିକେ ।

କିନ୍ତୁ, ହାଏ ! ଯଦି
ହୃଦୟରେ ମାନବିକାତର ଅଭାବ
ନାହିଁ ତିଳେ ସ୍ନେହଶ୍ରଦ୍ଧା ମମତାରୁ ଖିଏ
ତାକୁ ପୂରଣ କରିବ କିଏ ?



ଝଙ୍କାର- ଭାଗ ୭ ସଂଖ୍ୟା ୧୬-୭



# ବହୁରୂପି ପାଣି

ପାଣି ।
ପାଣିର ବିଭିନ୍ନ ରୂପ
କାକର କରକା ।
କେବେ ପୁଣି ଛଦ୍ମବେଶୀ
ମରୁ ମରୀଚିକା ।





# ସୁନ୍ଦରୀ

ସୁନ୍ଦରୀ ପଣତକୁ ଛୁଇଁଲେ ପବନ
କେବେ ହୁଏ ଝଡ଼ କେବେ ସେ ମଳୟ ।
ସୁନ୍ଦରୀ ବୟସକୁ ଯୌବନ ଛୁଇଁଲେ
ଆସଇ ଶ୍ରାବଣ ପୁଣି ଆସଇ ଫଗୁଣ ।
ସୁନ୍ଦରୀ କୁନ୍ତଳକୁ ଛୁଇଁଲେ ବରଷା
କେବେ ଆଣେ ଝଡ଼ ପୁଣି ବଢ଼ି ଓ ମରୁଡ଼ି ।
ସୁନ୍ଦରୀ ଆଖିକୁ ଲୁହ ଆସିଗଲେ
ଝରଇ ମୁକୁତା ପୁଣି ଜଳେ ଅଗ୍ନିଶିଖା ।
ସୁନ୍ଦରୀ ପାଇଁ ଏସବୁ ହୋଇପାରେ
ଗଳ୍ପ ଉପନ୍ୟାସ ଅଥବା କବିତା
ପାଠକର ମନ କିନ୍ତୁ ପିତା ।



ଧ୍ୱନିପ୍ରତିଧ୍ୱନି - ୨୯.୬.୨୦୦୫

# ପ୍ରେମିକର ରାତି

ପ୍ରେମିକା ତା କୋଳେ ଥିଲେ
ଜୋଛନା ଚନ୍ଦନ ବୋଳା
ଫୁଲ ମହମହ ଏଇ
ପ୍ରେମିକର ରାତି
ଫୁଲି ଫୁଲି ଉଠେ ତାର ଛାତି ।

ପ୍ରେମିକା ଦୂରେଇ ଗଲେ
ବିରହ ଝାନ୍‌ଜିରେ ସିଝେ
ନିଆଁ ଡହଡହ ଏଇ
ପ୍ରେମିକର ରାତି
ଫାଟିଫାଟି ଯାଏ ତାର ଛାତି ।

ସୁଲେଖା - ଏପ୍ରିଲ୍-ସେପ୍ଟେମ୍ବର ୨୦୦୧



# ପ୍ରକୃତି : ପ୍ରେମିକା

ଫୁଲ ଲତାରେ ଫୁଟେ
ଫୁଲ ବି ଓଠରେ ଫୁଟେ ।

ଲୁହ ଆଖିରୁ ଝରେ
ଲୁହ ବି ଆକାଶୁ ଝରେ ।

ନିଆଁ ବଣରେ ଲାଗେ
ନିଆଁ ବି ମନରେ ଲାଗେ ।

ପ୍ରକୃତି ବି ପ୍ରେମିକା
ପ୍ରେମିକା ବି ପ୍ରକୃତି ।



# ସ୍ଫୁଲିଙ୍ଗ

ମୌନତାର କ୍ୟାନଭାସରେ
ଶବ୍ଦାୟିତ ଚିତ୍ରଟିଏ..... ସ୍ଫୁଲିଙ୍ଗ ।

ଦଗ୍ଧ ସ୍ମୃତି ବିଦଗ୍ଧ ଆତ୍ମାର
ସ୍ୱର ଟିଏ .... ସ୍ଫୁଲିଙ୍ଗ ।

ନିର୍ବାସିତ ଜୀବନ ଓ କୀଟଦ୍ରଷ୍ଟା
ଯୌବନର ସ୍ୱାକ୍ଷର..... ସ୍ଫୁଲିଙ୍ଗ ।

ମହାକାଳ ଅଂଧକାର ଓ
ପ୍ରଳୟ ପ୍ରଭଞ୍ଜନର ବାର୍ତ୍ତା .... ସ୍ଫୁଲିଙ୍ଗ ।

ଯୁବବନ୍ଧୁ - ଡିସେମ୍ବର - ୨୦୦୪



# ଶୀତ

ଶୀତ ଆଣେ ଚୁଲିମୁଣ୍ଡେ
ଆଇମା କାହାଣୀ ଉଷୁମ ।

ଶୀତ ଆଣେ ଧୂଳି ଦାଣ୍ଡେ
ପତ୍ରଜଳା ଧୂନିର ଉଷୁମ ।

ଶୀତ ଆଣେ ଶେଯପରେ
ପ୍ରିୟା ପାଇଁ ପ୍ରୀତିର ଉଷୁମ ।

ଶୀତ ଆଣେ ଷଠିଘରେ
କୁଆଁ କୁଆଁ ରାବର ଉଷୁମ ।

ଶୀତ ଆଣେ ମୃତ୍ୟୁପରେ
ମଶାଣିରେ ଜୁଇର ଉଷୁମ ।



ଦୈନିକ ଆଜିକାଲି - ୧୧.୧୧.୦୫

# ବିରୋଧାଭାସ

ମୟୁର ନାଚୁଛି ଏଇ ଆଷାଢ଼ ବର୍ଷାରେ
ମୁଁ ଦେଖି ଝରକାଫାଙ୍କେ ଜଳୁଛି ଇର୍ଷାରେ ।

ଫୁଲ ଫୁଟେ ବାସ ଛୁଟେ,
ବଗିଚାରେ ଆନନ୍ଦ ଲହରି
ମନ ଅଗଣାରେ ମୋର
ଲୁହ ଆଉ ଲହୁ ଖେଳେ ହୋରି ।

ଜନସୁଧା- ଅଗଷ୍ଟ ୨୦୦୩



# ପ୍ରେମିକା : ପ୍ରିୟା

ପ୍ରେମିକା କହୁଛି ମୋତେ-
ନିଶ ଆଉ ରଖନା,
ପ୍ରିୟା କହେ ନିଶବିନା ମୁହଁ ଭଲ ଦିଶେନା ।

ପ୍ରେମିକା କହୁଛି ମୋତେ-
ଛାଡ଼ି ମୋତେ ଯାଅନା,
ପ୍ରିୟା କହେ ଭାତ ନାହିଁ
ଘରେ ବସି ରୁହନା ।

ପ୍ରେମିକା କହୁଛି ଦେଖ ଆକାଶର ନୀଳ
ମୋର ଦୁଇ ଆଖିରେ,
ପ୍ରିୟା କହେ ଆସ ତୁମେ ଶୋଇପଡ଼
ଉଠିବାକୁ ହେବ ପୁଣି କାଲି ବଡ଼ି ସକାଳେ ।



# ମଧୁ ଶଯ୍ୟା

ଜୀବନରେ ସିନା ମଧୁ ଆଣିଦେଲେ
ହୁଅନ୍ତା ସେ ମଧୁ ଶଯ୍ୟା ।
ମଧୁ ଚନ୍ଦ୍ର ତିଥି ଉଆଁସରେ ଭରି
ପାରିବ କି ମଧୁ ଶଯ୍ୟା ।

ମିଳନର ମଧୁ ଝରିଲେତ ବଧୂ
ଇଛିବ ସେ ମଧୁଶଯ୍ୟା
ଲୁହର ଜହର ପିଇପିଇ ଆହା
ଅଣ୍ଟାଳୁଛି ମଧୁ ଶଯ୍ୟା ।





# କର୍ଷଣ

ଭୂମି କର୍ଷଣ ପାଇଁ
ଲୋଡ଼ା ହୁଏ ଲଙ୍ଗଳ ।
ସୌନ୍ଦର୍ଯ୍ୟ କର୍ଷଣ ପାଇଁ
ପ୍ରସାଧାନ ଭଣ୍ଡାର ।
ମସ୍ତିଷ୍କ କର୍ଷଣ ପାଇଁ
ଆବଶ୍ୟକ ଚିନ୍ତା
ଗଣତନ୍ତ୍ର କର୍ଷଣକୁ
ଲୋଡ଼ାପଡ଼େ ନେତା ।
ସ୍ୱାଦର କର୍ଷଣ ପାଇଁ
ଦରକାର ଜିହ୍ୱା
ହୃଦୟ କର୍ଷଣ ପାଇଁ
ପଦୁଟିଏ 'ଆହା' ।



# ଅମୃତମୟ ବିଷ

ସବୁଦିନେ ବ୍ୟାଧି ବିଷରେ ଜଳୁଥିବା ଜୀବନଟି
ହେଉଥାଏ ବଡ଼ ଛଟପଟ ।
ଯେଉଁ ବିଷ ଔଷଧଟି ନିବାରଣ କରେ ତା'ର କଷ୍ଟ
ନୁହେଁ କି ତା ସାଧୁଜନେ ଅମୃତ ସଦୃଶ !

ସଦା ସନ୍ଦେହରେ ଯାର ନୀଳବିଷେ ଜର୍ଜରିତ ଚିତ୍ତ
ରହସ୍ୟର ଉଦ୍‌ଘାଟନ ଲୋଡ଼ାପଡ଼େ ଯଦି
ବିଷତୁଲ୍ୟ ଅତିକଟୁ ସତ୍ୟ
ସେ ବିଷ କି ସାଧୁଜନେ ନୁହଇ ଅମୃତ !

ଏଣୁ ବୋଧେ
ଛଳନା-ଅମୃତ ଠାରୁ
ଖୁବ୍ ଭଲ ବିଷମୟ ସତ୍ୟ ।





ଅସରନ୍ତି କଥା

ଏଣୁ

ଲେଖୁନାହିଁ ଇତି ।

ଆଗକୁ ଆଗକୁ ପୁଣି

ବହୁକଥା କହିବାକୁ ଅଛି ।





କଟକ ଜିଲ୍ଲା ବିଭକ୍ତ ହେବା ପରେ ଯାଜପୁର ଜିଲ୍ଲାର କୋରେଇ (ଶଂଖପାରୀ) ଗାଆଁରେ ନନ୍ଦକିଶୋର ସିଂହ ୧୯୪୨ ମଇ ପନ୍ଦର ତାରିଖରେ ଜନ୍ମ ନିଅନ୍ତି । ପିତା ୰ ରାଜକିଶୋର ସିଂହ ପୋଷ୍ୟ ୰ ନବକିଶୋର ସିଂହ, ମାତା ୰ ରୂପାଦେବୀ । ସେ ଏକାଧାରାରେ ଜଣେ ଶିକ୍ଷକ, ପ୍ରଶାସକ, ଶିଶୁ ସାହିତ୍ୟିକ, ଗୀତିକବି, ନାଟ୍ୟକାର, ନାଟ୍ୟଶିଳ୍ପୀ, ପ୍ରାବନ୍ଧିକ ତଥା ସୌଖିନ ସ୍ତମ୍ଭକାର । ପଲ୍ଲୀଜୀବନଧର୍ମୀ ପତ୍ରିକା 'ବୋଲେ ହୁଁ ଟି'ର ସଂପାଦନା ସେ ବିଗତ ସାତବର୍ଷ ଧରି କରିଆସୁଛନ୍ତି । ମୁଖ୍ୟତଃ ସେ ଶିଶୁ ସାହିତ୍ୟିକ ଓ ଗୀତିକାର ଭାବେ ପ୍ରତିଷ୍ଠିତ । ୨୦୦୧ ମସିହା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ଗୀତିକବି ଭାବେ ପୁରସ୍କୃତ । ଗୀତିକବି ହେଲେ ହେଁ ଓଡ଼ିଶାରୁ ପ୍ରକାଶିତ ପ୍ରାୟ ପ୍ରତ୍ୟେକ ପତ୍ରପତ୍ରିକାରେ ତାଙ୍କର ଗୀତିକବିତା ସାଙ୍ଗକୁ ପ୍ରବନ୍ଧ, ନାଟକ, କବିତା ବି ପ୍ରକାଶିତ । ଆକାଶବାଣୀ, ଦୂରଦର୍ଶନ, ମଞ୍ଚ, ଚଳଚ୍ଚିତ୍ର ସହ ମଧ୍ୟ ସେ ବହୁଭାବରେ ସମ୍ପୃକ୍ତ ।

ଆସନ୍ତୁ ସେଇ ସ୍ରଷ୍ଟାଙ୍କର କେତୋଟି ସାହିତ୍ୟ କୃତି ସମ୍ବନ୍ଧରେ ପରିଚିତ ହେବା ।

**କବିତା**
ଆବୃତ : ଅନାବୃତ

**ନାଟକ**
ଲହୁ-ଲୁହ
ମାନସୀ ଗବେଷଣାଗାର
ସବୁ ମଣିଷ ସମାନ
ଗୁରୁ ଦକ୍ଷିଣା

**ଗୀତିକବିତା**
ଗୀତିଗୁଚ୍ଛ
ଗୀତି ଓ ଗଜଲ୍
ଇଚ୍ଛାବତୀ ନଦୀ
ନନ୍ଦକିଶୋର ଗୀତିବିଚିତ୍ରା

**ନବ ସାକ୍ଷର**
ଜଗଜମାଲିରେ ଋଷବାସ କଥା
ସୁଜାତା ସେବା ସମିତି
ମୋ ଗାଁ ମୋ ମାଆ
ସକଳ ଘଟେ ନାରାୟଣ
ଯେତେ ଦିଅଁ ସେତେ ପୂଜା

**ଶିଶୁ ସାହିତ୍ୟ**
ରଙ୍ଗବେରଙ୍ଗ
ସାବାସ୍ ଟୁଟୁ
ମଜା କାହାଣୀ
ଟୁଟୁର ରାଜଜଫେରି
ଶିଆଳ ଝିଅର ବାହାଘର
ଏକ-ଦୁଇ-ତିନି
ଶ୍ରବଣ କୁମାର
ପୁରାଣ କଥା
ଆମ ଗାଆଁ ହାଟ
କଥାଟିଏ କହୁଁ (ପରୀକଥା)
କଥାଟିଏ କହୁଁ (ପୁରାଣ କଥା)
ଶ୍ରୀରାମକୃଷ୍ଣ ଉପଦେଶାବଳୀ
(୧ମ ଓ ୨ୟ ଖଣ୍ଡ)
ପିଲାଙ୍କ କଥା ସରିତସାଗର

**ଅନୁବାଦ**
ମୃଣାଳିନୀ
ଇନ୍ଦିରା ଓ ଯୁଗଳ ଅଙ୍ଗୁରୀୟ
କୃଷ୍ଣକାନ୍ତଙ୍କ ଉଇଲ୍
ଅରଣ୍ୟର ଆହ୍ୱାନ
ସୁଇସ୍ ରବିନ୍‌ସନ୍
ଘରଛଡ଼ାର କାହାଣୀ
ଲର୍ଡ ଜିମ୍
ଉଇଲର କାହାଣୀ

**ରମ୍ୟ ରଚନା**
କ୍ୟାସେଟ୍ କନ୍ୟା
ଓ ଆହୁରି ଅନେକ...